ଲେଖକ— ଶ୍ରୀ ପଦ୍ମଚରଣ

# ଅର୍ଜୁନ କଳା ହରଣ

## ଓ ବଂଶୀ ଚୋରି



—ପ୍ରକାଶକ—

ବିନାଥ ପୁସ୍ତକାଳୟ

ହାଟପଦା ରୋଡ

ବଲାଙ୍ଗିର

ନୂତନ ସଂସ୍କରଣ

ମୂଲ୍ୟ—ପଚିଶ ପଇସା

# ଅର୍ଜୁନ କଳା ହରଣ

( ଘନବନ୍ଧୁ ଭଜେ କରିଲ ବଢ଼ ଦେଉଳେ—ବୃତ୍ତେ )

ହେ ହରି ବଜେ ସିଆଳି ଲତା ତଳର
ହେ ହରି ବଜେ ସିଆଳି ଲତା ତଳର

ଶ୍ରୀଭୁଜେ ବନମାଳ        ବାମ ଚରଣ ଚୋଳି
ରଖି ଦକ୍ଷିଣ ଜାନୁ ଉପର
ହେ, ହରି ବଜେ ସିଆଳି ଲତା ତଳର (ଘୋଷା)
ପୂର୍ବ ମୁଖ ହୋଇଣ ସେ ବସିଲେ ହରି
ଯୋଗାଧି ପୁରୁଷ ଯୋଗ ଆସନ କରି
ଚତୁର୍ଭୁଜରେ ଉଭା        ହୋଇ ପାଇଲ ଶୋଭା
ଯଜ୍ଞୋପବୀତ ସ୍କନ୍ଧେ        ଦିଶଇ ମନ ଲୋଭା
ବିଦ୍ୟୁତ ଝଲକେ ଯେସନେ କଳା ମେଘର
ହେ, ହରି ବଜେ ସିଆଳି ଲତା ତଳର ॥୧॥

ଧନୁ ଶର ଧରିଣ        ସେ ଜାତି ଶବର
ମୃଗ ଶର ବନୋଦେ ସେ ଟପ ବୁଲେ ବନର
ଲତା ଗହଳେ କୃଷ୍ଣ        ପାଦ ଦେଖିଣ
ମୃଗର କର୍ଣ୍ଣି ମଣି ଠାଣି ବନ୍ଧିଲା ବାଣ
ନାଗଚ ବାଜିଲା ସେ ପଦ୍ମର
ହେ, ହରି ବଜେ ସିଆଳି ଲତା ତଳର ॥୨॥
ବାଣ ବିନ୍ଧି ସେ        ଶବର ଧାଇଁଣ ଖଟେ
ଦେଖିଲା ବାଣ ଲାଗିଛି କୃଷ୍ଣ ପଦ୍ମରେ

ହସ୍ତୁ କୃପାଣ ଗୋଟି          ଖସି ପଡ଼ିଲା ସେଠି
ଶ୍ରୀକୃଷ୍ଣ ପାଦ ତଳେ ନାଗ୍ର ଶବର ଲୋଟି
ମୂର୍ଚ୍ଛିତ ହୋଇ ପଡ଼େ ଭୂମିର
ହେ, ହରି ବଜେ ସିଆଳି ଲତା ତଳର ।୩।

କ୍ଷଣେ ମରଢ଼ କ୍ଷଣେ          ଜଟେ ହୋଇଣ ବ୍ୟସ୍ତ
ବୁକୁରେ ପିଟଇ ତା ବେନ ହସ୍ତ
ମୁଁ ବଡ଼ ହୀନ ଜନ          ହେ ପ୍ରଭୁ ନିରଞ୍ଜନ
ଜଗତ ନାଥଙ୍କୁ ମୁଁ ବିନ୍ଧି ମାରିଲି ବାଣ
ନିଶ୍ଚେ ନରକେ ବାସ ମୋହର
ହେ, ହରି ବଜେ ସିଆଳି ଲତା ତଳର ।୪।

ପୁଣିହିଁ ବୋଲଇ କଥା          ମୁଁ ଏଡ଼େ କର୍ମ
କେ କରିଲା ପ୍ରଭୁ ମୋହର ମତିଭ୍ରମ
ଶବର ଜାତି ହୀନ          ଅଟେ ମୂର୍ଖ ଅଜ୍ଞାନ
ମୋ ଦୋଷ କ୍ଷମାକର ହେ ପ୍ରଭୁ ଜନାର୍ଦ୍ଦନ
ସ୍ୱହସ୍ତେ ଖଡ଼୍ଗେ ଛେଦ ମୋ ଶିର
ହେ, ହରି ବଜେ ସିଆଳି ଲତା ତଳର ।୫।

ଶବରର କ୍ରନ୍ଦନ          ଦୂରେ ଶୁଣି ଶବରୀ
ଖରତରେ ଧାଇଁ ସ୍ୱାମୀଙ୍କୁ ରକ୍ଷ କରି
ଦେଖିଲା ପାଖେ ଯାଇ          ପ୍ରଭୁ ଜଗତ ସାଇଁ
ଶବର ମୁଖୁଁ ସବୁ ଘଟଣା ଶୁଣି ଚାହିଁ
କାନ୍ଦଇ ଧରି ପ୍ରଭୁ ପୟର
ହେ, ହରି ବଜେ ସିଆଳି ଲତା ତଳର

ମୋ ସ୍ୱାମୀର ଦୋଷ　　ରଷ କର ହେ ହରି
ଅଜ୍ଞାନେ ସେ ଶର ବନ୍ଧ ଅଛନ୍ତି କରି

ମୃଗର ପ୍ରାୟ କରି　　ଧରେଣ ତୁମ୍ଭ ଚରଣ
କ୍ଷମା ଦିଅ ହରି ପଶୁଛି ମୁଁ ଶରଣ
ଶରଣ ରକ୍ଷଣ ବାନା ନାମ ତୁମ୍ଭର
ହେ, ହରି ଭଜେ ସିଆଳ ଲତା ତଳର ॥୭॥

ଶବରୀ ବଚନ　　କର୍ଣ୍ଣେ ଶୁଣି ଶ୍ରୀହରି
କହନ୍ତି ପୂର୍ବ ଅର୍ଜିତ କର୍ମ ମୋହର
ତୁମ୍ଭେ ନ ହୁଅ ଭ୍ରମ　　ଆମ୍ଭେ କହୁଛୁ ଶୁଣ
ଯାଅ କାରୁଣାପୁର କହ ଯାଇ ଅର୍ଜ୍ଜୁନ
ଦେଖା କରୁ ଆସି ମୋ ପାଶର
ହେ, ହରି ଭଜେ ସିଆଳ ଲତା ତଳର ॥୮॥

ପ୍ରଭୁଙ୍କ ଆଜ୍ଞାକୁ　　ବନ୍ଦିଣ ଜାଗ ଶବରୀ
ତକ୍ଷଣେ ମିଳିଲା ସେ ବାରୁଣାବନ୍ତର
ଧର୍ମ ଯୁଧିଷ୍ଠି ସ୍ୱର୍ବିଁ　　କହେ ଶବର ଧାଇ
କୃଷ୍ଣ ଅଛନ୍ତି ପେଷି ଅର୍ଜ୍ଜୁନ ନେବା ପାଇଁ
ଚାଲ ଚାଲ ହେ ମୋର ସଙ୍ଗର
ହେ, ହରି ଭଜେ ସିଆଳ ଲତା ତଳର ॥୯॥

ଶବର ମୁଖରୁ ସବୁ　　ଘଟଣା ଶୁଣି
ଅର୍ଜ୍ଜୁନ ଡାକ ଯୁଧିଷ୍ଠି କହେ ବୁଝାଇ

କହେ ଅର୍ଜୁନ ଭ୍ରାତା          ଦେଖି ଯିବଇଁ ସଖା
କେତେ ବିପଦୁ କରି ଅଛନ୍ତି ରକ୍ଷା
ବିଦାୟ ଦିଅ ମୋତେ ତତ୍ପର
ହେ, ହରି ବନେ ସିଆଳି ଲତା ତଳର ।୧୦।
ଯୁଧିଷ୍ଠି କହନ୍ତି ଶୁଣ          ବୀର ଅର୍ଜୁନ
ଶ୍ରୀକୃଷ୍ଣଙ୍କ ଶୁଭ ବାଞ୍ଛା ଆଣ ବହନ
ଶୁଣ ଶୁଣରେ ପାର୍ଥ          ଦେଖି ଯାଉଛୁ ସତ
ଶ୍ରୀକୃଷ୍ଣଙ୍କ ବଦନେ କେବେ ନ ଦେବୁ ହସ୍ତ
ମନେ ରଖିଥା ବାକ୍ୟ ମୋହର
ହେ, ହରି ବନେ ସିଆଳି ଲତା ତଳର ।୧୧।
ଭାଇଙ୍କ ଆଦେଶ          ଘେନି ବୀର ଅର୍ଜୁନ
ଜାଗକୁ ସଙ୍ଗତେ ଘେନି ଚଳିଲେ ବନ
ଖୁଣ୍ଟିଁ ଦେଖିଲେ ଡୋଳେ          ଶ୍ରୀକୃଷ୍ଣଙ୍କ ପାଦ ତଳେ
ଶର ବିଦ୍ଧ ଚରଣୁ ରୁଧିର ଗଳି ପଡେ
ଦେଖିଣ ପାର୍ଥ ହେଲେ କାତର
ହେ, ହରି ବନେ ସିଆଳି ଲତା ତଳର ।୧୨।
ଜାଗକୁ ଖୁଣ୍ଟିଁଣ          ଅର୍ଜୁନ କୋପ ମୂର୍ତ୍ତି
ପାର୍ଥଙ୍କୁ ଶ୍ରୀକୃଷ୍ଣ ଯେ ସାନ୍ତ୍ୱନା ଦିଅନ୍ତି
ନ ଜାଣୁ ତୁ ଅର୍ଜୁନ          ଅଟେ ତା' ପିତୃ ଋଣ
ଯାଅ ଶବର ଜାଗ ଏହି ଦେହରେ ଜାଣ
ତୁମାନେ ଜାଗ ଏହି ଦେହରେ ଜାଣ
ତୁମାନେ ବସି ଚଳ ସ୍ୱର୍ଗକୁ
ହେ, ହରି ବନେ ସିଆଳି ଲତା ତଳର ।୧୩।

ଜାଗ୍ର ସନ୍ଧ ଶବଣ୍ଡ ଯେ ଗଲେ ସ୍ୱର୍ଗକୁ
ଅଶ୍ରୁ ନୟନେ ପ୍ରଭୁ କହନ୍ତି ପାର୍ଥକୁ
ଧନ୍ୟ ଧନ୍ୟ ହେ ସଖା ଏ ବେଳେ ହେଲ ଦେଖା
ଶର କାଢ଼ି ପଦ୍ମରୁ ଜୀବନ କର ରକ୍ଷା
ମାଉସୀ ପୁଅ ଭାଇ ମୋହର
ହେ, ହରି ବଜେ ସିଆଳ ଲତା ତଳର ।୧୪।

ଯୁଧିଷ୍ଠିଙ୍କ ମନ ଅଛି କହେ ଅର୍ଜୁନ
କେଉଁ ଭାବେ ଛୁଇଁବି ହେ ତୁମ ଚରଣ
ପାର୍ଥ ମୁଖକୁ ଚାହିଁ କହନ୍ତି ଭବଗ୍ରାହୀ
ଦେହେ ନ ଦେଇ ଶର ଢିଅ ବଢ଼ାଇ
ଶୁଣି ସେ ପାର୍ଥ ବଢାଏ ଶର
ହେ, ହରି ବଜେ ସିଆଳ ଲତା ତଳର ।୧୫।

ପାର୍ଥ କରୁ ଶର ଧରି ସେ ନାରାୟଣ
ଅର୍ଜୁନ ଠାରୁ କଲେ କଲ୍ୟ ହରଣ
ଚଳାଇ ବାୟୁ ବେଗ କଲେକ ପ୍ରାଣ ତ୍ୟାଗ
ଥାଅ ଥାଅ ହେ ସଖା ଏଣିକ ତୁମ ଭାଗ୍ୟ
ଏ ଶେଷେ ଦେଖା ହେଲା ତୁମ୍ଭର
ହେ, ହରି ବଜେ ସିଆଳ ଲତା ତଳର ।୧୬।

ଯେଉଁ ଗାଣ୍ଡିବକୁ ପାର୍ଥ ଥିଲା ଧରିଣ
କାଠଣାବନ୍ତକୁ ନେଲା ମୁଣ୍ଡେ ବୋହିଣ

ଧର୍ମ ଯୁଧିଷ୍ଠିର କଥା ଅର୍ଜୁନେ ଲାଗେ ଚିନ୍ତା
କହେ ପଦ୍ମଚରଣ ଏ ମୋ କ୍ଷୁଦ୍ର କବିତା
ଲେଖେ ପାର୍ଥି ଶାରଦା ପସୁର
ହେ, ହସି ହଜେ ସିଆଳ ଲଟା ତଳର ।୧୭।

—o—

## ବଂଶୀ ଚୋରି

( ମୋ ରଙ୍ଗଲତା ଛୁଟିଛି—ବୃତ୍ତେ )

କୃ—ମେ ନନ୍ଦେଲ କେନେଇଛି ମୋ ବଇଁଶି କେ ପାଇଛି
ଏଇଠାରେ ରଖିଥିଲି ଖୋଜି ମୁଁ ନ ପାଉଛି ।

ଟ—କଳଶି କେ ଭାଙ୍ଗିଲା ମୋ ବେଷ୍ଣ କଲା ଗହଣା
ବୋଉ ମୋତେ ଗାଳିଦେବ ଗାଁ ଲୋକ ଗଞ୍ଜଣା
ଏକ ଝନା ଅନ୍ୟ ନାହିଁ କେ କାହାକୁ କହୁଛି ।

କୃ—ମାଗିଥିଲେ ଦେଇଥାନ୍ତି ନ ମାଗି ବେଷ୍ଣ କଲା
କରମ କପାଳେ, ତାର କୁଆଁ ଛୁଆ ଉଡ଼ିଲା
ଧୂଳିଖେଳୁ ମୁହିଁ ଏଥେ ଏ ଖେଳନା ଦେଖିଛି ।

ଗା—ଜଳ ଆଣି ଆସିଥିଲି କଳି କିଏ ଲେଉଟିଲା
ଗଛ ଗହଳରେ କିଏ ଲୁଚି ଲୁଚି ଛୁହିଁଲା
ପିଲା ବାଳୁ ପଛେ ଘୁଇପରି ଧାଇଁଛି ।

କୃ—ଗଣ ଦେଇ କହୁଛି ମୁଁ ଜାଣେନା'କି ଛନ୍ଦଷ
ଭଲରେ କହି ଦେଉଛି ବହି କିଏ ନେଇଛି
ପୁଲିସରେ ବାନ୍ଧିଦେବ କରିବ ଯା କହୁଛି

ରା—ଗ୍ଲୁଇ ଗ୍ଲୁଇ ନାଲି ଝର୍ସି ସଞ୍ଜ ହୋଇନ
ଠାଣ କଟ ଦିନେ ଫୁଲ୍ଲ କଲ ମୋ ମଥାମଣି
ଭେଲା ଉଡ଼ିଯିବ ଚୋର ଧରା ଯେବେ ପଡ଼ୁଛି

କୃ—ଉତ୍ତର କରନା ଆଜ ବେଳ ଚଢ଼େ ଯାଉଛି
ସବୁ ଅପରାଧ ପାଇଁ କାନ ମୋଡ଼ା ଖାଉଛି
ଗହଣା ପାଇଛି ମୂର୍ତ୍ତି ବନ୍ଧି ମୋ ପାଖେ ଅଛି

ରା—ବାପା ବୋଉ ମନ ଚାହିଁ ମନ ତନୁ ଦିଶୁଛି
ଦିନେ ସ୍ୱପନେ ସଦା ତୁମ ରୂପ ଦିଶୁଛି

କୃ—ଆଜ ଠୁ ହଳଧର ପରତରେ ଲେଖୁଛି
ମନ କଥା କହିଯା ତୋ ବାହା ହଅ ଅଇଲ
ସବୁ ଅଳିଦଳ ତୁମ ପ୍ରୀତି କାନେ ଛୁଇଁଲ
ନରସି ବୃତକ ପର ଜଳପାଇଁ ଝୁହିଁଛୁ



ମୁଦ୍ରଣ:—ଆଶ୍ରମ ପ୍ରେସ୍, ଜମଖଣ୍ଡି [ଗଞ୍ଜାମ]